# କଳିଙ୍ଗ

# କବି ସମ୍ରାଟ

# କଳିଙ୍ଗ ଭାରତୀ

" କଳିଙ୍ଗ ଭୂଇଁକି ସାରଦା
ଅପାର କାଳରୁ ବରଦା ।
କଳିଙ୍ଗେ ଯେଉଁ ରୂପ ବହି
ଜନମି ମୋହନ୍ତି ଏ ମହୀ ।
ସେ ରୂପ ଅତି ଅଭିରାମ
ସକଳ ସଉଷ୍ଠବ ଧାମ ।
କଳିଙ୍ଗ ଧରଣୀ ଚାହାଁରେ
କଳପି ଧାଏଁ ନିରନ୍ତରେ ।

— ବିଚ୍ଛନ୍ଦ ଚରଣ

କବି ସମ୍ରାଟ

ଉପେନ୍ଦ୍ରଭଞ୍ଜ ଜୟନ୍ତୀ

୧୯୫୧

ଉତ୍କଳ ଯୁବ ସାହିତ୍ୟ ସମାଜ

ମୂଲ୍ୟ ଛଅ ଅଣା ମାତ୍ର

# କବିସମ୍ରାଟ ଗ୍ରନ୍ଥାବଳୀ

ପ୍ରକାଶିତ :—

(୧) ବୈଦେହୀଶ ବିଳାସ; (୨) ଲାବଣ୍ୟବତୀ; (୩) କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ; (୪) ପ୍ରେମସୁଧାନିଧି; (୫) ରସିକ ହାରାବଳୀ; (୬) ଅବନାରସତରଙ୍ଗ; (୭) ଛାନ୍ଦ ଭୂଷଣ (ଦୁଷ୍ପ୍ରାପ୍ୟ); (୮) ରାମ ଲୀଳାମୃତ (ଦୁଷ୍ପ୍ରାପ୍ୟ); (୯) ଚିତ୍ରକାବ୍ୟ ବନ୍ଧୋଦୟ; (୧୦) ସୁଭଦ୍ରା ପରିଣୟ (୧୧) ସୁବର୍ଣ୍ଣରେଖା; (୧୨) ଶୋଭାବତୀ; (୧୩) ଚଉପଦୀ ଭୂଷଣ; (୧୪) ଚଉପଦୀ ଚନ୍ଦ୍ର; (୧୫) ରସପଞ୍ଚକ; (୧୬) ଗୀତାଭିଧାନ; (୧୭) ଯମକରାଜ ଚଉତିଶା; (୧୮) କଳା କଉତୁକ; (୧୯) ସଙ୍ଗୀତ ଉପେନ୍ଦ୍ର ଭଞ୍ଜ; (୨୦) ଦଶପୋଇ; (୨୧) ଚଉପଦୀହାର; (୨୨) ବଜାର ବୋଲି ।

ଅପ୍ରକାଶିତ :—

(୧) ରସଲୀଳା; (୨) ବ୍ରଜଲୀଳା; (୩) ଶ୍ରୀକୃଷ୍ଣ ବିହାର; (୪) କୁଞ୍ଜବିହାର; (୫) ରସଲେଖା (୬) ତ୍ରୈଲୋକ୍ୟମୋହିନୀ; (୭) ଲତା; (୮) ମୁକ୍ତାବଳୀ; (୯) ଚନ୍ଦ୍ରକଳା; (୧୦) ଶୋଭାବତୀ; (୧୧) କଳାବତୀ; (୧୨) ରସମଞ୍ଜରୀ; (୧୩) ଇଚ୍ଛାବତୀ; (୧୪) ହେମମଞ୍ଜରୀ; (୧୫) ଚିତ୍ରଲେଖା; (୧୬) ପ୍ରେମଲତା; (୧୭) ମନୋରମା; (୧୮) ଅନଙ୍ଗରଙ୍ଗିଣୀ (୧୯) ଶଶିରେଖା; (୨୦) ମିଳନ ମଞ୍ଜରୀ; [୨୧ ରସନିଧି (୨୨) ଚିତ୍ର ତରଙ୍ଗିଣୀ; (୨୩) କଳ୍ପଲତା କଳ୍ପଲେଖା; (୨୪) ଚଉପଦୀ ଚନ୍ଦ୍ରିକା; (୨୫) ଛାନ୍ଦପୋଇ; (୨୬) ନଅପୋଇ; (୨୭) ବାରପୋଇ; (୨୮) ଷୋଳପୋଇ; (୨୯) କାବ୍ୟସାର; (୩୦) ହାସ୍ୟାର୍ଣ୍ଣବ; (୩୧) ସଙ୍ଗୀତ କୌମୁଦୀ; (୩୨) ବାରମାସୀ; (୩୩) ଦୁର୍ଗାସ୍ତୁତି; (୩୪) ଚକ୍ରନିସ୍ତାରଣ; (୩୫) ଚତୁର୍ଥ ଗୀତା; (୩୬) କାଳକଣ୍ଟକ; (୩୭) ଷଡ଼ଋତୁ; (୩୮) ପୁରୁଷୋତ୍ତମ ମାହାତ୍ମ୍ୟ; (୩୯) ଛତିଶ ବିଟ; (୪୦) ପଞ୍ଚଶାୟକ ।

# କଳିଙ୍ଗ

ଗାଙ୍ଗେୟପୂର୍ବ ଉପତ୍ୟକାରୁ ଗୋଦାବରୀ ଉପତ୍ୟକାର ଶେଷସୀମା ପର୍ଯ୍ୟନ୍ତ ସମୁଦ୍ର ଧାରେ ଧାରେ ବିସ୍ତୃତ ବିଶାଳ ରାଜ୍ୟର ନାମ କଳିଙ୍ଗ । ବହୁ ଐତିହାସିକ ବିପର୍ଯ୍ୟୟ ଯୋଗୁଁ କଳିଙ୍ଗର ସୀମା ସଙ୍କୁଚିତ ହୋଇ କଳିଙ୍ଗ ଆଜି ଆଧୁନିକ ଉତ୍କଳରେ ପରିଣତ ହୋଇଅଛି । ଉତ୍କଳ ବା ଓଡ଼ିଶା ଏ ଦୁଇ ନାମଠାରୁ କଳିଙ୍ଗ ନାମ ବହୁଗୁଣରେ ଅଧିକ ଗୌରବାବହ । କଳିଙ୍ଗ ଚଣ୍ଡାଶୋକଙ୍କ ଧର୍ମପୀଠ ଓ ଚକ୍ରବର୍ତ୍ତୀ ଖାରବେଳଙ୍କ ଜନ୍ମସ୍ଥଳୀ । ପ୍ରାଚୀନ ଓ ମଧ୍ୟଯୁଗରେ ସୁଦୂର ପ୍ରାଚ୍ୟଖଣ୍ଡରେ ସଂସ୍ଥାପିତ ଭାରତୀୟ ଉପନିବେଶମାନ କଳିଙ୍ଗର କୀର୍ତ୍ତି । ହିନ୍ଦୁ ପୁରାଣ, ବୌଦ୍ଧ ଓ ଜୈନ ଗ୍ରନ୍ଥମାନ କଳିଙ୍ଗର କୀର୍ତ୍ତିଗାନରେ ମୁଖର । କଳିଙ୍ଗ ସାଧବମାନଙ୍କ ନୌବାଣିଜ୍ୟ ଜଗତ୍‌ପ୍ରସିଦ୍ଧ । ବିଖ୍ୟାତ ଐତିହାସିକ ରାଖାଲଦାସ ବନ୍ଦ୍ୟୋପାଧ୍ୟାୟ ଲେଖିଅଛନ୍ତି ଯେ, କଳିଙ୍ଗବାସୀମାନେ ପେରୁ ଓ ମେକ୍ସିକୋ ପର୍ଯ୍ୟନ୍ତ ବୋଇତ ଯୋଗେ ବାଣିଜ୍ୟ କରିବାକୁ ଯାଉଥିଲେ । ଆମେରିକାରେ "ମୟ" ସଭ୍ୟତାର ଯେଉଁସବୁ ଧ୍ୱଂସାବଶେଷ ଦେଖି ଐତିହାସିକମାନେ ବିସ୍ମୟାଭିଭୂତ ହୁଅନ୍ତି, ତାହା ପ୍ରାଚୀନ କଳିଙ୍ଗ ସଭ୍ୟତାର କୀର୍ତ୍ତି ଅବଶେଷ ବୋଲି ସେମାନଙ୍କର ଅନୁମାନ । ଐତିହାସିକମାନଙ୍କ କଥିତ ବୃହତ୍ତର ଭାରତ ( Greater India ) ବୃହତ୍ତର କଳିଙ୍ଗ ଛଡ଼ା ଅନ୍ୟ କିଛି ନୁହେ । ଇଣ୍ଡୋନେସିଆ ବା ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜରେ କଳିଙ୍ଗ କୀର୍ତ୍ତିସବୁ ଅଦ୍ୟାବଧି ବିରାଜିତ । ବିଖ୍ୟାତ ବୋରବୁଦ୍ଦର ଓ ଚଣ୍ଡୀକଳସ କଳିଙ୍ଗ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ପରାକାଷ୍ଠା । ସିଂହଳକୁ କଳିଙ୍ଗରାଜକୁମାର ବିଜୟ କଳିଙ୍ଗସାମ୍ରାଜ୍ୟର ଉପନିବେଶରେ ପରିଣତ କରିବା କଥା ଇତିହାସପ୍ରସିଦ୍ଧ । ବ୍ରହ୍ମଦେଶ ମଧ୍ୟ କଳିଙ୍ଗର ଉପନିବେଶ ଥିଲା । ବ୍ରହ୍ମଦେଶର

ନିମ୍ନଭାଗର ଅଧିବାସୀମାନେ ତଲ୍ଲଇଙ୍ଗ ବା ତ୍ରିକଳିଙ୍ଗ ବୋଲାଉଥିଲେ । ବ୍ରହ୍ମଦେଶର ଉପରଭାଗକୁ ଶ୍ରୀକ୍ଷେତ୍ର କୁହାଯାଉଥିଲା । ଖ୍ରୀଷ୍ଟଙ୍କ ଜନ୍ମର ବହୁ ଆଗରୁ କଳିଙ୍ଗବାସୀମାନେ ଜାଭା ଓ ସୁମାତ୍ରା ପ୍ରଭୃତି ଦ୍ୱୀପପୁଞ୍ଜରେ କଳିଙ୍ଗ ଉପନିବେଶରେ ସ୍ଥାପିତ କରିଥିଲେ । କଳିଙ୍ଗର ଏ ଔପନିବେଶିକ ସାମ୍ରାଜ୍ୟକୁ ଚୀନବାସୀମାନେ ହୋ-ଲିଙ୍ଗ ବୋଲି ଅଭିହିତ କରୁଥିଲେ । କଳିଙ୍ଗରୁ ଯାଇ ସୁବର୍ଣ୍ଣ ଦ୍ୱୀପରେ ଉପନିବେଶ ସ୍ଥାପନ କରିଥିବା ଶୈଳୋଦ୍ଭବବଂଶୀୟ ରାଜାମାନେ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀରେ ଐଶ୍ୱର୍ଯ୍ୟ ଯଶ ଓ ଗୌରବର ତୁଙ୍ଗତମ ଶିଖରରେ ଆରୂଢ଼ ହୋଇଥିଲେ । ଉକ୍ତ ବଂଶର ସର୍ବପ୍ରଧାନ ନରପତି ଶୈଳେନ୍ଦ୍ରଙ୍କ ନାମାନୁଯାୟୀ ତାଙ୍କ ସାମ୍ରାଜ୍ୟର ନାମକରଣ ହୋଇଥିଲା । ଏପରିକି ସେ ଯୁଗରେ କଳିଙ୍ଗ ସଭ୍ୟତାକୁ ଶୈଳେନ୍ଦ୍ର ସଭ୍ୟତା ବୋଲି ପୃଥିବୀର ବିଭିନ୍ନାଂଶର ଲୋକେ ଜାଣିଥିଲେ । ଶ୍ରୀ ନେହେରୁ ତାଙ୍କ Discovery of India ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ଯେ ପାରସ୍ୟଠାରୁ ଚୀନ ପର୍ଯ୍ୟନ୍ତ ଦେଶମାନେ ଶୈଳେନ୍ଦ୍ରଙ୍କ ଅନୁଗତ ଥିଲେ । କଳିଙ୍ଗର ଏହି ସୁଦୂରପ୍ରସାରୀ ଗୌରବ କବିତାରେ ନିମ୍ନଲିଖିତ ଭାବରେ ଲକ୍ଷିତ ହୋଇଅଛି—

ପାଣିସୁଅ ସମ ବହିଗଲା ମା ! ଧନ
ଆସିଲା କେତେ ଶତାବ୍ଦୀ ଅକଳନ
ଧନ୍ୟ ଧନ୍ୟ ମା ତୋ ସାଧବ ସନ୍ତାନ
ଋଦ୍ଧିମନ୍ତ ବେଳା ରମ୍ୟା ଗୋ
ଶସ୍ୟଶ୍ୟାମା !
କହ କେଉଁ ଭୂମି ଭଲ ତୋହ ସମା ଗୋ ॥

ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ ବହୁକାଳ ସ୍ୱାଧୀନତା ଭୋଗକରିବା ଫଳରେ କଳିଙ୍ଗର ସଭ୍ୟତା ଓ କୃଷ୍ଟି

କଳିଙ୍ଗ ମହୁଡ଼ମଣି



ଖ୍ରୀ: ୧୬୮୫ କବସମ୍ରାଟ ଉପେନ୍ଦ୍ର ଭଞ୍ଜ ଖ୍ରୀ: ୧୭୨୫

ବୃତ୍ତାନ୍ତରୁ ହୋଇପାରିଥିଲା ଓ ନିଜର ସ୍ଵତନ୍ତ୍ରତାକୁ ଅକ୍ଷୁଣ୍ଣ ରଖି ପାରିଥିଲା । କେଶରୀ, ଗଙ୍ଗ ଓ ସୂର୍ଯ୍ୟବଂଶୀୟ ନରପତିମାନେ ବହିଃଶତ୍ରୁ ଆକ୍ରମଣକୁ ପ୍ରତିହତ କରି କଳିଙ୍ଗକୁ ଅପରାଜେୟ କରିଥିଲେ । ବହୁ ଶତାବ୍ଦୀକାଳ ସ୍ଵାଧୀନ ଓ ବହିଃପ୍ରଭାବରୁ ମୁକ୍ତ ରହି କଳିଙ୍ଗ ଯେଉଁ ସ୍ଵତନ୍ତ୍ର କୃଷ୍ଟିର ଉଦ୍ଭବ ଓ ବିକାଶ ସାଧନ କରିଥିଲା, ତାହା ଅତୁଳନୀୟ । ସୁପ୍ରାଚୀନ ଦ୍ରାବିଡ଼ ସଭ୍ୟତା ଦାକ୍ଷିଣାତ୍ୟକୁ ଆଶ୍ରୟଭୂମି କଲା ଆଗରୁ କିଛୁକାଳ କଳିଙ୍ଗରେ ଆସ୍ଥାନ ଜମାଇଥିଲା । ତାହାପରେ ଆର୍ଯ୍ୟ ସଭ୍ୟତା ମଧ୍ୟ କଳିଙ୍ଗରେ କିଛୁକାଳ ଆସ୍ଥାନ ଜମାଇ ଦକ୍ଷିଣାପଥରେ ଦ୍ରାବିଡ଼ ସଭ୍ୟତାକୁ ପ୍ରଭାବିତ କରିବାକୁ ଅଗ୍ରଗତି କଲା । ତେଣୁ କଳିଙ୍ଗରେ ଦୁଇ ସଭ୍ୟତାର ମଧୁର ସମନ୍ଵୟରେ ଗୋଟିଏ ଅପୂର୍ବ ସଭ୍ୟତାର ଅଭ୍ୟୁଦୟ ହେଲା । ସାହସିକ କଳିଙ୍ଗ ଜାତିର ବାହୁ ବିକ୍ରମରେ ଏ ଅପୂର୍ବ ସଭ୍ୟତାର ଆଲୋକ ପୃଥିବୀର ବିଭିନ୍ନାଂଶରେ କିପରି ବିକୀର୍ଣ୍ଣ ହୋଇଥିଲା ତାହା ଆଗରୁ ସୂଚିତ ହୋଇଅଛି । ଆଜ ଉତ୍ତର ଭାରତୀୟ କୃଷ୍ଟି ଓ ଦକ୍ଷିଣ ଭାରତୀୟ କୃଷ୍ଟିର ଯାବତୀୟ ବୈଶିଷ୍ଟ୍ୟ କଳିଙ୍ଗ କୃଷ୍ଟିରେହିଁ ପରିଲକ୍ଷିତ ହୁଏ । କଳିଙ୍ଗକୁ ମହାଭାରତୀୟ କୃଷ୍ଟିର ମହାସମନ୍ଵୟ ଭୂମି ବୋଲି ନିଃସଙ୍କୋଚରେ ଅଭିହିତ କରାଯାଇପାରେ । ଭାରତରୂପ ପଦ୍ମପୁଷ୍ପରେ କଳିଙ୍ଗକୁ କେଶର ବୋଲି କୁହାଯାଇଅଛି । କଳିଙ୍ଗର ଅତୀତ ବିରାଟ ଓ ଗୌରବମୟ । କଳିଙ୍ଗର ବର୍ତ୍ତମାନ କିଞ୍ଚିତ ପରିମାଣରେ ନୈରାଶ୍ୟ ବିଜଡ଼ିତ ହେଲେହେଁ ସେହି ଅତୀତକୁ ମୂଳଦୁଆ କରି କଳିଙ୍ଗର ସମୁଜ୍ଜ୍ଵଳ ଭବିଷ୍ୟତ ଗଢ଼ିବାକୁ ଯୁବକମାନେ ଆଜି ବଦ୍ଧପରିକର । ଭାରତର ବିଭିନ୍ନ ପ୍ରଦେଶ (ରାଜ୍ୟ)ର କୃଷ୍ଟିର ବିଭିନ୍ନ ବୈଶିଷ୍ଟ୍ୟ ରହିଅଛି । ଏ ସବୁ ବୈଶିଷ୍ଟ୍ୟର ଅନୁଶୀଳନ କଲେ ଯେଉଁ ପ୍ରଚ୍ଛନ୍ନ ଯୋଗସୂତ୍ର ଦ୍ଵାରା ଏ ସବୁ କୃଷ୍ଟି ଗ୍ରଥିତ ହୋଇ ମହାଭାରତୀୟ

ମହାକୃଷ୍ଟି ଗଠିତ ହୋଇଅଛି, ତାହା ସମ୍ୟକ ଭାବରେ ଦୃଷ୍ଟି-ପଥାରୂଢ଼ ହୋଇଥାଏ । ଭାରତରେ ସକଳ ଭେଦ ମଧ୍ୟରେ ମହାଐକ୍ୟର ବୀଜ ନିହିତ ଥିବାରୁ ଭାରତ ଆଜି ଗୋଟାଏ ମହାଜାତି । ସେ ଦୃଷ୍ଟିରୁ କଳିଙ୍ଗ କୃଷ୍ଟିର ବୈଶିଷ୍ଟ୍ୟ ମହାଭାରତୀୟ ସଭ୍ୟତାର ମୂଲ୍ୟବାନ ଅଙ୍ଗ । ଉତ୍କଳ ଛାତ୍ର ସାହିତ୍ୟ ସମାଜ ଏହି ବୈଶିଷ୍ଟ୍ୟର ଉପାସକ । ଏହି ବୈଶିଷ୍ଟ୍ୟର ପ୍ରଖ୍ୟାପନ ଓ ମର୍ମୋଦଘାଟନ ଉତ୍କଳ ଛାତ୍ର ସାହିତ୍ୟ ସମାଜ ପକ୍ଷରେ ଭାରତ-ଜନନୀଙ୍କ ପ୍ରକୃଷ୍ଟ ସେବା ।

କଳିଙ୍ଗ ନୌବାଣିଜ୍ୟ ଆଜି ଲୁପ୍ତ ଓ ବିସ୍ମୃତ । ଖୁଦୁରୁକୁଣୀ ଓଷାର ତଅପୋଇ କାହାଣୀ ଏବଂ କାର୍ତ୍ତିକମାସର ବୋଇତ ବନ୍ଦାଣ ଓ ବୋଇତ ଭସାଣରେ ଏହାର କ୍ଷୀଣ ସ୍ମୃତି ମାତ୍ର ରହିଅଛି । ଏଠାରେ ତହିଁର କେତୋଟି ଐତିହାସିକ ପ୍ରମାଣ ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବ ନାହିଁ ।

ପୁରୀଜିଲ୍ଲାର ମାଣିକପାଟଣାଠାରେ ନିକଟରେ ଖଣ୍ଡିଏ ତମ୍ବାପଟା ମିଳିଅଛି । ତହିଁରେ ଚିଲିକାରେ ମଣିଷ, ପଶୁ ଓ ଜନିଷପତ୍ର ବୋଇତରେ ପାର କରିବାପାଇଁ ଯେଉଁ ଭଡ଼ା ନିଆଯାଉଥିଲା, ତାହା ବର୍ଣ୍ଣିତ ହୋଇଅଛି । ଯଥା:—

| | |
|---|---|
| ପ୍ରତି ମଣିଷ ପାଇଁ | ଟ ୦ ୧ ୯ |
| ପ୍ରତି ସବାରି ଆଠଜଣ ଗଉଡ଼ (ଜଣେ କୁଲି ଓ ଜଣେ ମସାଲଚି ସହିତ) ପାଇଁ | ଟ ୦ । |
| ପ୍ରତି କୁଲି (ବୋଝ ସହିତ)ପାଇଁ | ଟ ୦ ⁄ |
| ପ୍ରତି ଘୋଡ଼ା ଓ ଘୋଡ଼ସବାର ପାଇଁ | ଟ ୦ ।⁄ |
| ଘୋଡ଼ା ପହଁରିକରି ଗଲେ ଓ ଘୋଡ଼ସବାର ବୋଇତରେ ଗଲେ | ଟ ୦ ⁄⁄ |
| ବୋଝ ସହିତ ପ୍ରତି ହାତୀ ପାଇଁ | ଟ ୧ ୧ |

ପ୍ରତି ଓଟ ଓ ଆରୋହୀ ପାଇଁ ଟ ୫୵

ଓଟ ପଡ଼ିରିକର ଗଲେ ଓ କେବଳ

ଆରୋହୀ ବୋଇତରେ ବସିଲେ ଟ ୮ ।

ପ୍ରତି ମେଣ୍ଢା ଓ ଛେଳିପାଇଁ ଟ ୦ ୵

ପ୍ରତି ବଳଦଗାଡ଼ି ପାଇଁ ଟ ୦ ୵

ପ୍ରତି ବଳଦ ବା ଗଧ ପାଇଁ ଟ ୦ ୵୬

ପ୍ରତି ବଳଦ ଓ ଗଧ (ବୋଝ ନ ଥିଲେ) ଟ ୦ ୵

ମାଟିବୋଝ ପାଇଁ ଟ - ୵

ଏଥିରୁ ହାତି ଓଟ ପ୍ରଭୃତି ପ୍ରକାଣ୍ଡକାୟ ଜୀବଙ୍କୁ ପାର କରିପାରୁଥିବା ବୋଇତମାନଙ୍କର ଆକାର ଅନୁମେୟ । ପୁରୁଷୋତ୍ତମ ଦେବଙ୍କ ବାହିନୀ ମାଣିକପାଟଣା ଘାଟ ପାରହୋଇ କାଞ୍ଚୀ ଅଭିଯାନକୁ ଚଳିକାବାଟେ ଯାଇଥିବେ ।

"ବ୍ରହ୍ମାଣ୍ଡ ପୁରାଣ" ନାମକ ତାଳପତ୍ର ପୋଥିରେ ଓଡ଼ିଶାରେ ବ୍ୟବହୃତ ହେଉଥିବା ବୋଇତମାନଙ୍କର ଯେଉଁ ବର୍ଣ୍ଣନା ଦେଖାଯାଏ, ତାହା ପ୍ରାଚୀନ କଳିଙ୍ଗର ନୌଯାତ୍ରା ପ୍ରସଙ୍ଗ ଆଲୋଚନା କଲେ ଆଦୌ କପୋଳକଳ୍ପିତ ବୋଲି ବୋଧହୁଏ ନାହିଁ । ଯଥା:—

ଚିଲ୍‌କାହ୍ରଦେ ସହସ୍ରାଶ୍ଚ ସୁପୋତାଃ ଜଳଗାମିନଃ
ତାମ୍ରାଚ୍ଛାଦିତାଃ ତେ ବୈ ଦୃଢ଼ାଃ ସହସ୍ରଜନଧାରକାଃ
ବହୁଚକ୍ରାନ୍ୱିତା ଶୀଘ୍ରା ଯନ୍ତ୍ରଗାଃ ଗୃହକାଶ୍ରିତାଃ
ବାଣିଜ୍ୟକରଣେ ଶକ୍ତାଃ ଦ୍ୱିପଞ୍ଚଶିଖରାନ୍ୱିତାଃ ॥
ଦ୍ୱୀପାନ୍ତର ଗତାସ୍ତାଃ ଯାବା-ମଳୟ-ସିଂହଳ
ଗଙ୍ଗାସାଗରଚୀନେଷୁ ଯତ୍ନକ୍ଷଣା ତଦା ଗତାଃ ।
ଦେଶାଦେଶାନ୍ତଦ୍ରବ୍ୟାଣି ବହନ୍ତୋ ଯାନ୍ତି କେଚିତ୍ ବା
ଜଳମଗ୍ନେ ତୁ ବା କେ ଚିତ୍ ମଜ୍ଜନେ ଗୁପ୍ତ କୌଶଳୈଃ ।

ଲୁକ୍କଶ୍ୟୈତାଃ ଭୂତପୂର୍ବଂ   ମହାଶ୍ଚର୍ଯ୍ୟଂ ଟରଂଗତାଃ
କର୍ମଯନ୍ତ୍ରଂ ଲବଯନ୍ତ୍ରଂ ମତ୍ସ୍ୟରୂପଂ ତୁ ପକ୍ଷିକଂ ।
ହ୍ରସ୍ୱଂ କାଷ୍ଠମୟଂ ଦେହଂ   ସଂମପଠ ସୁରକ୍ଷିତଂ
ଲୌହବନ୍ଧ ଗତଂ ନିମ୍ନେ   ଚକ୍ରବ୍ୟୂହ ସମନ୍ୱିତଂ ।
ବାୟୁନାଳ ପରିଶୁଦ୍ଧଂ   ସଙ୍କୋଚ ବିସ୍ତାର କରଂ
ବସ୍ତ୍ରତୋ ମଣ୍ଡନଂ ଜ୍ଞେୟଂ ସଂକୋଚେ ଭ୍ରସମାନକଂ ।
ଘଟେପନ କ୍ଷ୍ୱଲନେ ଚୈବ ଚକ୍ରବ୍ୟୂହାଦ୍ୱିସ୍ଥଲନେ
କୁଠନେ ସ୍ଫୋଟନେ ବାପି ହ୍ୱଲନେ ପ୍ରେରଣଂ ଚରେତ୍ ।

ଭୂଳାଭିଣା ସଂସ୍କୃତରେ ଲେଖା ହୋଇ ଥିବାରୁ ଏଥିରେ ଭାଷାଗତ ନାନାଭ୍ରମ ରହିଅଛି ସତ୍ୟ ତଥାପି ପୂର୍ବକାଳର ଇତିହାସ ରୂପେ ଏହା ବିଶ୍ୱାସ ଯୋଗ୍ୟ । ନୌଯାନର ନାନାବିଧ କୌଶଳ ଆୟତ୍ତ କରି ନ ଥିଲେ ନାନା ବିପଦସଙ୍କୁଳ ଜଳରାଶି ପାରହୋଇ ଦେଶଦେଶାନ୍ତରରେ ସାରା ପୃଥିବୀବ୍ୟାପୀ ଉପନିବେଶ ସ୍ଥାପନକରିବା କଳିଙ୍ଗବାସୀମାନଙ୍କ ପକ୍ଷରେ ଆଦୌ ସମ୍ଭବ ହୋଇ ନ ଥାନ୍ତା । ସାହସିକ କଳିଙ୍ଗବାସୀମାନେ ଅପୂର୍ବ ଶିଳ୍ପୀ ଓ କଳାକାର ଥିଲେ । କେଉଁ ସ୍ମରଣାତୀତ କାଳରୁ ବସ୍ତ୍ରଶିଳ୍ପ କଳିଙ୍ଗରେ ଚରମ ପରକାଷ୍ଠା ଲାଭକରିଥିଲା । ପୂର୍ବକାଳରେ କଳିଙ୍ଗର ବସ୍ତ୍ର ପିନ୍ଧି ଜଣେ ବୌଦ୍ଧ ସନ୍ନ୍ୟାସିନୀ ଉଲଗ୍ନ ବୋଲି ବିବେଚିତ ହୋଇ ରାଜଦରବାରରେ ତିରସ୍କୃତ ହୋଇଥିଲେ । କଳିଙ୍ଗରେ କି ସୂକ୍ଷ୍ମାତିସୂକ୍ଷ୍ମ ସୂତା ପ୍ରସ୍ତୁତ ହେଉଥିଲା ଏହା ତହିଁର ପ୍ରମାଣ । ବସ୍ତ୍ରର ସୂକ୍ଷ୍ମତା ପରୀକ୍ଷା କରିବା ନିମନ୍ତେ ରାତିରେ ତାକୁ ଘାସ ଉପରେ ପାରି ଦିଆଯାଉଥିଲା । କାକର ପଡ଼ିଲା ପରେ ବସ୍ତ୍ର ଯଦି ଘାସରୁ ବାରି ହୋଇ ନ ଥିଲା ତାହାହେଲେ ତାହା ସୂକ୍ଷ୍ମ ବୋଲି ବିବେଚିତ ହେଉଥିଲା । ଏ ସୂକ୍ଷ୍ମ ବସ୍ତ୍ରକୁ ବାଉଁଶନଳୀରେ ପୂରାଇ ରଖାଯାଉଥିଲା ଏବଂ କଳିଙ୍ଗର ବସ୍ତ୍ର ଦିନେ ସମଗ୍ର ପୃଥିବୀର ବିଳାସସମ୍ଭାର ଥିଲା । ଏପରିକି ତାମିଲ

ଭାଷାରେ କଳିଙ୍ଗ ଶବ୍ଦର ଅର୍ଥ କଷ୍ଟ । ସେମଦେଶର ଇତିହାସରୁ ଜଣାଯାଏ ଯେ କଳିଙ୍ଗରେ ପ୍ରସ୍ତୁତ ଲୁଗା କିଣିବାରେ ରୋମ୍ୟ-ମାନଙ୍କର ବହୁ ଅର୍ଥ ବ୍ୟୟ ହେଉଥିବାରୁ ତାହା ସେମାନଙ୍କ ବ୍ୟବସ୍ଥା ସଭାର ଆଲୋଚ୍ୟ ବିଷୟ ହୋଇଥିଲା । କଳିଙ୍ଗର ଶ୍ରେଷ୍ଠ ମହାକାବ୍ୟ ବୈଦେହୀଶ ବିଳାସରେ ଏ ସୂକ୍ଷ୍ମ ବସ୍ତ୍ରର ଉଲ୍ଲେଖ ରହିଅଛି ।

ବେଢ଼ରେ ପାଦରେ ଲେଖିଲେ ଲକ୍ଷା
ବାଣ ହେଲା ବେନ ରଙ୍ଗ କି ଦକ୍ଷା
ବିକଶିତ କୋକନଦ ମଧ୍ୟର
ବେଢ଼ି ଭ୍ରମେ କି ସରସ୍ୱତୀ ମାର ସେ
ବଂଶ ନଳୀରେ ଥିବାର ଯେ
ବାଛି ପିନ୍ଧି ଦୂର୍ବ ଦଳ ମାଳ ଚେଳ
କୋଳ ଇଚ୍ଛି ଶ୍ରୀରାମର ଯେ ॥

( ଦଶମ ଛାନ୍ଦ—୧୭ ପଦ )

ଏହା ବସ୍ତ୍ରଶିଳ୍ପ ନୁହେଁ, ଯାବତୀୟ ଶିଳ୍ପରେ କଳିଙ୍ଗର ଦକ୍ଷତା ଓ ପାରିପାଟ୍ୟ ଜଗତ ବିଖ୍ୟାତ ହୋଇଥିଲା । ଆଜି କର୍ପୂର ଉଡ଼ିଯାଇ କନା ମାତ୍ର ପଡ଼ିଥିଲେ ମଧ୍ୟ ତହିଁରୁ କଳିଙ୍ଗର ଲୁପ୍ତ ଗୌରବର ସ୍ପଷ୍ଟ ସଙ୍କେତ ମିଳେ । କଳିଙ୍ଗ ସ୍ଥାପତ୍ୟ ଓ କଳିଙ୍ଗ ଭାସ୍କର୍ଯ୍ୟ ସମଗ୍ର ପୃଥିବୀରେ ଅତୁଳନୀୟ । ପୁରୀ, ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ଏବଂ ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜରେ ଅବସ୍ଥିତ ବୋରବୁଧର ଓ ଚଣ୍ଡୀକଳସ କଳିଙ୍ଗର ଜଗଜ୍ଜୟୀ କୀର୍ତ୍ତି । କଳିଙ୍ଗବାସୀମାନେ ସଭ୍ୟତା ଓ ଧର୍ମର ଆଲୋକ ନେଇ ଯାଇ ପୃଥିବୀର ବିଭିନ୍ନ ଦେଶର ଲୋକଙ୍କୁ ନୂତନ କୃଷ୍ଟି ପ୍ରଦାନ କରିଥିଲେ । ଇତିହାସ ଆଜି ସ୍ପଷ୍ଟ ଭାଷାରେ ତାହା ଘୋଷଣା

କରୁଅଛି । ତାମ୍ରଲିପ୍ତି, ପିପିଲି, କୋଣନଗର ବା କୋଣାର୍କ ପ୍ରଭୃତି କଳିଙ୍ଗ ଦେଶୀୟ ବନ୍ଦରର ପୃଥିବୀବ୍ୟାପୀ ପ୍ରସିଦ୍ଧି ଥିଲା ।

ପୂର୍ବରୁ ସୂଚିତ ହୋଇଥିବା ଅପୂର୍ବ ଭୌଗୋଳିକ ପରିସ୍ଥିତି ଯୋଗୁଁ ଉତ୍ତର-ଭାରତୀୟ ଓ ଦକ୍ଷିଣ-ଭାରତୀୟ ବା ଆଦିବାସୀ, ଆର୍ଯ୍ୟ ଓ ଦ୍ରାବିଡ଼ ସଭ୍ୟତାର ବିଚିତ୍ର ସମନ୍ୱୟରେ କଳିଙ୍ଗରେ ଯେଉଁ ବିଶିଷ୍ଟ ସ୍ୱତନ୍ତ୍ର ସଭ୍ୟତା ବା କୃଷ୍ଟିର ଅଭ୍ୟୁତ୍ଥାନ ହୋଇଥିଲା ତାହା ଅଷ୍ଟାଦଶୀୟ ପାଶ୍ଚାତ୍ୟ ଜଡ଼ବାଦ ସଭ୍ୟତାର ଆଗମନ ପର୍ଯ୍ୟନ୍ତ ଅପ୍ରତିହତଭାବରେ ସଂବର୍ଦ୍ଧିତ ଓ ବିକଶିତ ହୋଇଥିଲା । କଳିଙ୍ଗର ଶ୍ରେଷ୍ଠ ପୀଠ ପୁରୁଷୋତ୍ତମକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଧ୍ୱଜାତଳେ ଆର୍ଯ୍ୟଧର୍ମର ସବୁ ସଂପ୍ରଦାୟର ମହାସମନ୍ୱୟ ସମାହିତ ହୋଇଅଛି । ଆଦିବାସୀମାନଙ୍କ ଦେବତା ନୀଳମାଧବ ଜଗନ୍ନାଥ ରୂପ ଅସମ୍ଭବ ସମ୍ଭବ କରିଅଛନ୍ତି । ଧର୍ମକ୍ଷେତ୍ରରେ ଏ ସମନ୍ୱୟର ଦୃଷ୍ଟାନ୍ତର ସମଗ୍ର ପୃଥିବୀରେ ଦୁର୍ଲ୍ଲଭ । ଆର୍ଯ୍ୟ ଜଗତର ଚାରି ମହାପୀଠ ଶଙ୍ଖକ୍ଷେତ୍ର [ପୁରୀ], ଚକ୍ରକ୍ଷେତ୍ର [ଭୁବନେଶ୍ୱର], ଗଦାକ୍ଷେତ୍ର [ଯାଜପୁର] ଓ ପଦ୍ମକ୍ଷେତ୍ର [କୋଣାର୍କ] କଳିଙ୍ଗରେହିଁ ଅବସ୍ଥିତ । ଆର୍ଯ୍ୟଶାସ୍ତ୍ର ମତରେ କଳିଙ୍ଗ ସମାନ ସ୍ୱର୍ଗମୋକ୍ଷପ୍ରଦାୟକ ଭୂମି ଆଉ ନାହିଁ ।

କଳାରେ କଳିଙ୍ଗ ଚରମ ପରାକାଷ୍ଠା ଅର୍ଜନ କରି ଉତ୍କଳ ବୋଲି ଅଭିହିତ ହୋଇଅଛି । ପୁରୀ, ଭୁବନେଶ୍ୱର, କୋଣାର୍କ, ବୋରବୁଦ୍ଧର ଓ ଚଣ୍ଡୀକଲସର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଜଗତରେ ଅତୁଳନୀୟ ବୋଲି ପୂର୍ବରୁ କଥିତ ହୋଇଅଛି । ସୁନାରୂପାର ତାରକସି କାମ ମଧ୍ୟ କେବଳ କଳିଙ୍ଗର ବିଶେଷତ୍ୱ । କଳିଙ୍ଗର ବସ୍ତ୍ରଶିଳ୍ପ ବାସନଶିଳ୍ପ ପ୍ରଭୃତି ବହୁବିଧ ଶିଳ୍ପ କଳିଙ୍ଗର କଳାପ୍ରାଣତାର ଚରମ ନିଦର୍ଶନ । କଳିଙ୍ଗ ପରି କଳାପ୍ରାଣ ଦେଶ ପୃଥିବୀରେ ଦୁର୍ଲ୍ଲଭ । ଏ ଅଧଃପାତର ଯୁଗରେ ମଧ୍ୟ କୁଟୀରଶିଳ୍ପ

ଯେନ କଳଙ୍ଗ ଜଗତରେ ଅଗ୍ରଣୀ । କଳିଙ୍ଗ ସାଡ଼ୀର ମୂଲ୍ୟ ଆଜି ଜଗତର ସଭ୍ୟଦେଶମାନଙ୍କରେ ଦୁଆରର ପରଦାରୂପେ ଘରେ ଘରେ ବ୍ୟବହୃତ ।

କଳିଙ୍ଗ କେବଳ କଳାପ୍ରାଣ କହିଲେ ଯଥେଷ୍ଟ ହେବନାହିଁ; କଳିଙ୍ଗ ସଙ୍ଗୀତପ୍ରାଣ ମଧ୍ୟ । ଏହି ସଙ୍ଗୀତପ୍ରାଣତା ଯୋଗୁଁ କଳିଙ୍ଗରେ ଅତୁଳ୍ୟ ଲିପିଶିଳ୍ପର ସୃଷ୍ଟି ହୋଇଛି । ଗୀତମାଧୁର୍ଯ୍ୟ ଉପଭୋଗ କରିବାପାଇଁ କଳିଙ୍ଗର କବିମାନେ ସଂସ୍କୃତ ଓ ଦେଶଜ ଶବ୍ଦ ସାଗର ମନ୍ଥନ କରି ଭାରତୀଙ୍କ ପାଇଁ ଅତୁଳନୀୟ କଣ୍ଠାଭରଣ ସୃଷ୍ଟି କରିଅଛନ୍ତି । କଳିଙ୍ଗର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଯଥାର୍ଥ ଭାବରେ ଘୋଷଣା କରିଅଛନ୍ତି—“କହେ ଉପେନ୍ଦ୍ର ଭଞ୍ଜ ମୁଁ ହୋଇଛି ଶବ୍ଦସାଗର ପାର ।” ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟିପାଇଁ ଶବ୍ଦ ଯୋଜନାକୁ କଳିଙ୍ଗର କବି ମହାକବିମାନେ ଅପୂର୍ବ କଳାରେ ପରିଣତ କରିଅଛନ୍ତି । ଜଡ଼ ପଦାର୍ଥରେ କଳା ଫୁଟାଇ କଳିଙ୍ଗ ସନ୍ତୁଷ୍ଟ ରହିନାହିଁ । ବାକ୍‌ରୂପ ଚେତନ ବସ୍ତୁରେ ମଧ୍ୟ କଳିଙ୍ଗର ଲିପିକଳାକାରମାନେ ଅପୂର୍ବ ଇନ୍ଦ୍ରଜାଲ ସୃଷ୍ଟି କରିଅଛନ୍ତି । ସେ ଇନ୍ଦ୍ରଜାଲ ହେଉଛି ବୈଦେହୀଶବିଳାସ, ରସକଲ୍ଲୋଳ ଓ ବିଦଗ୍ଧଚିନ୍ତାମଣି ପ୍ରଭୃତି ମହାକାବ୍ୟ । କଳିଙ୍ଗର ଜୀବନପରି କଳିଙ୍ଗର କାବ୍ୟକବିତା ମୂର୍ଚ୍ଛନାମୟ, କାରଣ ସାହିତ୍ୟହିଁ ଜୀବନର ମୁକୁର । କଳିଙ୍ଗ କବିକୁଞ୍ଜବନ ବିଶେଷ । କଳିଙ୍ଗରେ ସଂଖ୍ୟାତୀତ କବି ଜନ୍ମଗ୍ରହଣ କରି ଗଗନ ପବନକୁ ସେମାନଙ୍କ ମଧୁର ଅଳଙ୍କାରମୟ ଗୀତରେ ମୁଖରିତ କରି ଦେଇ ଯାଇଅଛନ୍ତି । କଳିଙ୍ଗରେ ଦେବାଳୟମାନଙ୍କ ଗାତ୍ରରେ ସଂଖ୍ୟାତୀତ ମୂର୍ତ୍ତି ତିଆରି ହେଲାପରି କଳିଙ୍ଗର ଲୋକ କଣ୍ଠରେ ସଂଖ୍ୟାତୀତ ମୌଳିକ ଛାନ୍ଦ ଓ ରାଗରାଗିଣୀ ସୃଷ୍ଟିହୋଇଅଛି । କଳିଙ୍ଗ ଅନ୍ୟ କୌଣସି ଭାଷା ଏପରିକି ସଂସ୍କୃତ ଭାଷାରୁ ମଧ୍ୟ ରାଗରାଗିଣୀ ଆହରଣ କରି କାବ୍ୟକବିତା

ରଚନା କରିବାରେ ପ୍ରଯୋଜନ କେବେ ଉପଲବ୍ଧି କରିନାହିଁ ।
ଯେଉଁମାନେ କଳିଙ୍ଗ ପାଇଁ ଏ ଉଦ୍ୟମ କରିବାକୁ ବାହାରିଅଛନ୍ତି
ସେମାନେ କଳିଙ୍ଗର ମୌଳିକତାଦ୍ୱାରା ସ୍ୱତନ୍ତ୍ରଭାବରେ ଉଦ୍‌ବୁଦ୍ଧ
ହୋଇ ଉପସ୍ଥିତ ହୋଇଅଛନ୍ତି । କଳିଙ୍ଗ ପ୍ରସ୍ତର ଶିଳ୍ପର
ଚରମ ପ୍ରକାଶ କୋଣାର୍କ ଓ କଳିଙ୍ଗ କାବ୍ୟଶିଳ୍ପର ଚରମପ୍ରକାଶ
ଉପେନ୍ଦ୍ରଭଞ୍ଜ । କଳିଙ୍ଗର କଳାସଙ୍ଗୀତମୟ ପୁଣ୍ୟ ପ୍ରାଣ ଚେତନ
ଅଚେତନ ଏ ଦୁଇ ଶିଳ୍ପରେ ଆତ୍ମପ୍ରକାଶ କରି ସମଗ୍ର ପୃଥିବୀକୁ
ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ବନ୍ୟାରେ ପ୍ଲାବିତ କରିଦେବାକୁ
ଉନ୍ମୁଖ । ଉତ୍କଳ ଛାତ୍ର ସାହିତ୍ୟ ସମାଜ ସେହି ଉନ୍ମୁଖତାର
ଉଦ୍‌ବେଳ ପ୍ରକାଶ ।

## ଜୟ ମା କଳିଙ୍ଗ ଭାରତୀ

—୦—

## କବିସମ୍ରାଟ

ଶ୍ରେଷ୍ଠ ଶିଳ୍ପୀ ଓ ଶ୍ରେଷ୍ଠ କମନୀୟ ପରମ୍ପରାର ମୁଖ୍ୟ
ପ୍ରତିନିଧି କରିବା ପାଇଁ ବିଧାତା ଘୁମୁସର ରାଜବଂଶରେ ୧୬୮୫
ଖ୍ରୀଷ୍ଟାବ୍ଦରେ ଯେଉଁ ଅଲୌକିକସାମାନ୍ୟ ପ୍ରତିଭାଶାଳୀ କାବ୍ୟ-
କଳାକାରଙ୍କୁ ଜନ୍ମ ଦେଇଥିଲେ, ସେ କଳିଙ୍ଗର କବିସମ୍ରାଟ ଭଞ୍ଜବଂଶ-
ତିଳକ ଉପେନ୍ଦ୍ରଭଞ୍ଜ । କୋଣାର୍କର ବିରାଟତା ଓ କମନୀୟତାର
ଯୁଗପତ୍ ବିକାଶ ତାଙ୍କ କାବ୍ୟ ସୃଷ୍ଟିରେ ଲକ୍ଷିତ । ଆର୍ଯ୍ୟକୃଷ୍ଟିର
ଶ୍ରେଷ୍ଠଧନ ଆଧ୍ୟାତ୍ମିକତା ତାଙ୍କ କାବ୍ୟ କବିତାର ମୂଳଭିତ୍ତି ।
ଅଳଂକାର ଶାସ୍ତ୍ରର ଯାବତୀୟ ଭୂଷଣକୁ ଅଙ୍ଗୀଭୂତ କରି
'କ'—ଆଦ୍ୟ ନିୟମରେ ସମଗ୍ର ରାମାୟଣକୁ ମନୋହର ରସାଳ
ମହାକାବ୍ୟରେ ପରିଣତକରିବା କେବଳ ତାଙ୍କପକ୍ଷରେ ସମ୍ଭବ ।
'ସ'—ଆଦ୍ୟ ନିୟମରେ ସୁଭଦ୍ରା ପରିଣୟ ଏବଂ 'କ'—ଆଦ୍ୟ ଓ

'କ'—ପ୍ରାନ୍ତ ନିୟମବଶିଷ୍ଟ କଳାକଉତୁକ ବୈଦେହୀଶବିଳାସ ତୁଲ୍ୟ ଏକା ଭାରତୀୟ ସାହିତ୍ୟରେ କାହିଁକି ବିଶ୍ୱସାହିତ୍ୟରେ ମଧ୍ୟ ଦୁର୍ଲ୍ଲଭ । କଳା ଅନୁରୋଧରେ କଠୋର ନିୟମର ଅନୁବର୍ତ୍ତୀ ହୋଇ ଜଗଜ୍ଜୟୀ କାବ୍ୟକବିତା ସୃଷ୍ଟି କରିବା କେବଳ କଳିଙ୍ଗର କବିସମ୍ରାଟଙ୍କ ପକ୍ଷରେ ସମ୍ଭବ । କୋଣାର୍କ ପୃଥିବୀର ଯେ କୌଣସି ଜାତି ସୃଷ୍ଟି କରି ନ ପାରେ । ସଙ୍ଗୀତର ଏତେ ମୂର୍ଚ୍ଛନା, ଅଳଂକାରର ଏତେ ପ୍ରାଚୁର୍ଯ୍ୟ, ଚମତ୍କାର ଭାବ ଓ ପ୍ରସାଦଗୁଣର ଏତେ ପୁଷ୍କଳତା ଯାହାକି କବିସମ୍ରାଟଙ୍କ ସାହିତ୍ୟରେ ଅଛି, ତାହା ପୃଥିବୀର ଅନ୍ୟ କୌଣସି ମହାକବିଙ୍କ କାବ୍ୟକବିତାରେ କୋଠାରରେ ପରିଦୃଷ୍ଟ ହୁଏନାହିଁ । କବିତାର ଯେତେ ଯେତେ ବିଭିନ୍ନ ଗୁଣ ଅଳଂକାର ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସେ ସକଳ ଗୁଣର ଅଧିକାରୀ । ପଣ୍ଡିତମ୍ମନ୍ୟ କେତେ ଦେଶଦର୍ଶୀ ସମାଲୋଚକମାନଙ୍କ ମୁଣ୍ଡରେ ପଦାଘାତ କରି ସେ ହିମାଳୟ ପରି ଦଣ୍ଡାୟମାନ । ତାଙ୍କ ମହିମା ଉକ୍ତ ଲଘୁଚେତା-ମାନଙ୍କ ଦୁରଧିଗମ୍ୟ । ସେ ନିଜେ ଜଗନ୍ନିୟନ୍ତାଙ୍କ ନିକଟରେ କାକୁତି କରି କହିଅଛନ୍ତି—

କର କରୁଣା ବିଜ୍ଞହସ୍ତଗତ ଏ ପୁସ୍ତକ ମୋହର ହୋଇବ
ଅଜ୍ଞ ସମୂହର କର୍ଣ୍ଣକୁହରକୁ କେବେହେଁ ପ୍ରବେଶ ନୋହିବ
ଆଖୁ, ଅନଳ, ହାସରେ ନ ଲଭୁ ବିନାଶ
ଉତ୍ତମ ଜନରେ ଦୂଷିତ ନୋହିଣ ପ୍ରକାଶ ହେବ ସର୍ବଦେଶ ।

[ରସିକ ହାରାବଳୀ]

ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ରସିକ ହାରାବଳୀ ଓ ରସଲେଖା ପ୍ରଭୃତି ପ୍ରେମକାବ୍ୟର ପଟାନ୍ତର ବିଶ୍ୱ ସାହିତ୍ୟରେ ଅଛି କାହିଁ ? ପ୍ରେମର ଏତେ ରସାଳ ଅଭିବ୍ୟକ୍ତି କାଳିଦାସ ମଧ୍ୟ କରି ପାରିନାହାନ୍ତି । କୋଣାର୍କରେ

ପ୍ରସ୍ତର ଶିଳ୍ପର ମୃତ୍ୟୁ ଘଟିଲା ପରି ଭଞ୍ଜ ସାହିତ୍ୟରେ ଲିପିଶିଳ୍ପର ମୃତ୍ୟୁ ଘଟିଅଛି ।

ଏତେ କଳାମୟ ଓ ଏତେ ସଙ୍ଗୀତମୟ କରି କାବ୍ୟ ରଚନା କରିବା ଜାତିର ଶତଶତ ବର୍ଷର ଅକ୍ଳାନ୍ତ ସାଧନାର ଫଳ । ବସ୍ତୁ ଦ.ସ ତ୍ରୟୋଦଶ ଶତାବ୍ଦୀକୁ କଳସା ଚଉତିଶା ଲେଖି ପାରି ଥିଲେ । ତା ପରେ ଦାମୋଦର ଦାସ ଓ ଦନେଇ ଦାସ ଯଥାକ୍ରମେ ରସକୁଲ୍ୟା ଓ କନଡ଼ା ଚଉତିଶାମାନ ଲେଖି କଳସା ପରି ରାଗମାନ ସୃଷ୍ଟି କଲେ । ଏହି ସମୟରେ ହିଁ ପ୍ରସିଦ୍ଧ ତାଙ୍କ ବହୁପ୍ରସିଦ୍ଧ ଚଉତିଶା ରାଗର ମଧ୍ୟ ପ୍ରବର୍ତ୍ତନ କଲେ । ଉପେନ୍ଦ୍ରଙ୍କ ଜନ୍ମବେଳକୁ ଦେଶବାସୀଙ୍କ ହୃଦୟ କନ୍ଦରରୁ ଉଦ୍ଭୂତ କୋଇଲି, ପୋଇ ଓ ଚଉପଦୀ ପ୍ରଭୃତି ବିଭିନ୍ନ ରାଗରାଗିଣୀବିଶିଷ୍ଟ ଗୀତ ଜାତି ମଧ୍ୟରେ ବ୍ୟାପକଭାବରେ ପ୍ରଚଳିତ ହୋଇ ସାରିଥିଲା । ଉଷାଭିଳାଷ, ରୁକ୍ମିଣୀବିଭା, ରହସ୍ୟମଞ୍ଜରୀ, ରଘୁନାଥବିଳାସ ପ୍ରଭୃତି କାବ୍ୟରେ ସେ ସବୁ ରାଗରାଗିଣୀର ବ୍ୟବହାର ସ୍ପଷ୍ଟ ପରିଲକ୍ଷିତ ହୁଏ । ମହାପ୍ରତିଭାଶାଳୀ ଉପେନ୍ଦ୍ରଭଞ୍ଜ ଏ ସମସ୍ତ ରାଗରାଗିଣୀକୁ ଅଯୁତ ଓ ଅବଲମ୍ବନ କରି ଏବଂ ନିଜ କଳ୍ପିତ ବା ପୁରାଣାଦିରୁ ଗୃହୀତ ଚରିତମାନଙ୍କୁ ନିଜ ଅଲୋକସାମାନ୍ୟ ପ୍ରତିଭାର ରସାଣରେ ରସାଣିତ କରି ଅପୂର୍ବ କାବ୍ୟ କବିତାର ସମ୍ଭାର ସୃଷ୍ଟି କରିଗଲେ । ସେ ପ୍ରାଚୀନ ମଧ୍ୟରୁ ଯାହାକୁ ଗ୍ରହଣ କଲେ ତାଙ୍କ ପ୍ରତିଭାର କମସ୍ପର୍ଶରେ ତାହା ଅପୂର୍ବ ହୋଇଉଠିଲା । "ଚେତି ଗୃହୁଣୀ ଗୃହିଁଲା ନିଶି ଜାଣେ ପାଶେ ନାହିଁ ଦ୍ରବ୍ୟ ତରୁଣ"ର ଅନୁରୂପ ଗ୍ରନ୍ଥ ତାଙ୍କ ପୂର୍ବବର୍ତ୍ତୀ କବି ଶିଶୁଶଙ୍କର ଦାସଙ୍କ ଉଷାଭିଳାଷରେ ମଧ୍ୟ ରହିଅଛି । "ବାଳକୁ ଆଲିଙ୍ଗନ" ଗ୍ରନ୍ଥର ଅନୁରୂପଗ୍ରନ୍ଥ ତାଙ୍କ ପିତାମହ ଧନଞ୍ଜୟଭଞ୍ଜଙ୍କ ରଘୁନାଥବିଳାସରେ ମଧ୍ୟ ରହିଅଛି । କିନ୍ତୁ ପ୍ରତିଭାର ଐନ୍ଦ୍ରଜାଲିକ ରସାଣ ସ୍ପର୍ଶ ଗୁଣେ ତାଙ୍କ

ସୃଷ୍ଟି ଓ. ସେସବୁ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ସୃଷ୍ଟ ହୋଇଅଛୁ । ଉପେନ୍ଦ୍ର, ଉତ୍କଳର ସ ଚନ୍ଦ୍ର-ଗଗନରେ ଖଦ୍ୟୋତନ ପରି ଉଦିତ ହେବା ଫଳରେ ତାଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ବହୁ କବି ମ୍ଳାନପ୍ରଭ ହୋଇ ପଡ଼ିଅଛନ୍ତି । ଇଂରାଜୀ ସାହିତ୍ୟର ସେକସପିଅର ମଧ୍ୟ ଇଂଲଣ୍ଡରେ ଏହି ଦଶା ଘଟାଇ ଉପେନ୍ଦ୍ରଙ୍କ ପରି କବିସମ୍ରାଟ ଆସନର ଅଧିକାରୀ ହୋଇଅଛନ୍ତି ।

ଜାତିର ପ୍ରକୃତି ଯେଉଁ ଜାତୀୟ କବିଙ୍କ କାବ୍ୟ କବିତାରେ ସର୍ବୋତ୍କୃଷ୍ଟ ରୂପ ପରିଗ୍ରହ କରେ ସେ ହିଁ ଅନ୍ତି ଜାତିର କବିସମ୍ରାଟ । କଳିଙ୍ଗ ଆଧ୍ୟାତ୍ମିକତା ଓ ଶୌର୍ଯ୍ୟ ବୀର୍ଯ୍ୟର ଲୀଳା ଭୂମି । ତେଣୁ କଳିଙ୍ଗ କବିସମ୍ରାଟଙ୍କ ସର୍ବଶ୍ରେଷ୍ଠ ରଚନା ବୈଦେହୀଶ ବିଳାସ ନିଖିଳଜଗଦ୍‌ବନ୍ଦନ ପରଂବ୍ରହ୍ମ ଶ୍ରୀରାମଚନ୍ଦ୍ରଙ୍କ ପଦଦେଶରେ ଅର୍ଘ୍ୟରୂପେ ଉତ୍ସୃଷ୍ଟ ଯେପରି କି କୋଣାର୍କ ଉତ୍ସୃଷ୍ଟ, "ତମଠନ୍ତି ଯେ ଖଣ୍ଡନକାରୀ" ସେହି ସୂର୍ଯ୍ୟନାରାୟଣଙ୍କ ପୟରରେ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଶୃଙ୍ଗାର ରସାତ୍ମକ ବହୁକାବ୍ୟ ରଚନା କରି ତହିଁରେ ପ୍ରେମର ବିସ୍ତୃତ ବିଶ୍ଳେଷଣ କରିଥିବାରୁ ବିଜାତୀୟ-ଭାବାପନ୍ନ ପଣ୍ଡିତମ୍ମନ୍ୟମାନେ ତାଙ୍କ ପ୍ରତି ପ୍ରକାଶ୍ୟରେ ଅବଧି ଜ୍ଞାପନ କରିଥାନ୍ତି । ଏମାନେ ଦୟାର ପାତ୍ର । ଜାତୀୟ ଭାବର ଗାଙ୍ଗେୟ ପ୍ରବାହ ସମ୍ମୁଖରେ ଏମାନଙ୍କର ଐରାବତର ଦଶା ହେଲାଣି । ଯେଉଁ ଜାତି ଯେତେ ଶୌର୍ଯ୍ୟବୀର୍ଯ୍ୟଶାଳୀ, ସେ ଜାତି ସେତେ ପ୍ରେମିକ । 'କଳିଙ୍ଗା ସାହସିକାଃ' ଏ ପୁରାଣ ବଚନକୁ କେହି ଉଡ଼ାଇ ଦେଇ ନ ପାରେ । ତେଣୁ ଭଗବାନଙ୍କ ସୃଷ୍ଟିର ସାରଭୂତ ସାମଗ୍ରୀ ନାରୀକୁ କେନ୍ଦ୍ର କରି ଦାମ୍ପତ୍ୟ ଜୀବନର ମଧୁମୟ ଚିତ୍ର ଆଙ୍କିବା କଳିଙ୍ଗ ଜାତି ପକ୍ଷରେ ଏକାନ୍ତ ସ୍ୱାଭାବିକ । କଳିଙ୍ଗ ଦେବାୟତନମାନଙ୍କରେ ଶୃଙ୍ଗାରୀ ମୂର୍ତ୍ତିସବୁ କଳିଙ୍ଗ ପ୍ରାଣ ପ୍ରାଚୁର୍ଯ୍ୟର ଅଭ୍ରାନ୍ତ ନିଦର୍ଶନ ମାତ୍ର । ଯେଉଁ ଜାତି ଭାରତବର୍ଷର ରାଜସୂ

ବ୍ୟସ୍ତ କରି ସୂର୍ଯ୍ୟନାରାୟଣଙ୍କ ପୂଜା ନିମନ୍ତେ କୋଣାର୍କର ମହା ମନ୍ଦିର ନିର୍ମାଣ କରିଥିଲେ; ସେ ଜାତି କଣ ଲମ୍ପଟୀ ? କୋଣାର୍କର ଶୃଙ୍ଗାର ମୂର୍ତ୍ତିସବୁ କଣ ଲମ୍ପଟ୍ୟର ପ୍ରତୀକ ? କଦାଚ ନୁହେ । ତେଣୁ କବିସମ୍ରାଟଙ୍କ କାବ୍ୟସୃଷ୍ଟିରେ ଯେଉଁ ଲଘୁଚେତାମାନେ ଲମ୍ପଟ୍ୟର ଗନ୍ଧ ପାଆନ୍ତି, ସେମାନଙ୍କ ମନ ବିକାରଗ୍ରସ୍ତ । କଳିଙ୍ଗ କୃଷ୍ଟିର ମର୍ମ ଉପଲବ୍ଧି କରିବାକୁ ସେମାନଙ୍କର ଯୋଗ୍ୟତା ନାହିଁ । ସେମାନଙ୍କ ଆଖିରେ ବିଜାତୀୟତାର ପରଳ ମାଡ଼ି ଯାଇଅଛି । ଉତ୍କଳ ଯୁବ ସାହିତ୍ୟ ସମାଜ ତା ଉପରେ ଆରୋଗ୍ୟପ୍ରଦ ଅସ୍ତ୍ରୋପଚାର କରିବାକୁ ବ୍ରତୀ ହୋଇଅଛି । ଯେଉଁମାନଙ୍କ କୁସଂସ୍କାରବଶତଃ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଶିକ୍ଷିତ ମହଲରେ ପୂଜ୍ୟପୂଜାରୁ ବହୁଦିନ ବଞ୍ଚିତ ଥିଲେ, ସେମାନେ ନିଜନିଜର ଭାବଜଗତରୁ କ୍ଷୁଦ୍ରତା ଓ ନୀଚତାରବୁଜନ୍ତୁ ଯେବେ ନ ଯାଆନ୍ତି ପ୍ରଗତିର ରାଜବର୍ତ୍ମରୁ ଅପସରି ଯାଆନ୍ତୁ; ନଚେତ ସେମାନଙ୍କର ମର୍ମବିଦାରକ ଅପମାନ ସୁନିଶ୍ଚିତ । ବିଜାତୀୟତାର ଉପାସକମାନଙ୍କର ଜାତୀୟ ମାନମନ୍ଦିରରେ ସ୍ଥାନ ନାହିଁ । ସେମାନେ ପରପଦଲେହନକାରୀ ଙ୍କ ବିଜାତୀୟ କୃଷ୍ଟିର ନିର୍ଲଜ ଦଲାଲ ମାତ୍ର ।

କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ କବିତାର ଇଂରାଜୀ ଅନୁବାଦରେ ଶୁଭ ଦିଆ ହୋଇଛି ମାତ୍ର । ପୃଥିବୀର ଅନ୍ୟାନ୍ୟ ମହାକବିମାନଙ୍କ କାବ୍ୟ କବିତା ସହିତ ଯେତେବେଳେ ସେସବୁ ଯଥାର୍ଥ ଭାବରେ ତୁଳିତ ହେବ, ସେତେବେଳେ କଳିଙ୍ଗ ଭାରତୀ ଅନୁଷ୍ଠାନ ଦ୍ୱାରା ଉତ୍କଳ ଯୁବ ସାହିତ୍ୟସମାଜ ଜରିଆରେ ଉପସ୍ଥାପିତ ମତବାଦର ଯଥାର୍ଥତା ପୂର୍ଣ୍ଣଭାବରେ ପ୍ରତିଷ୍ଠିତ ହେବ । ସେ ଶୁଭ ଦିନ ଆଗତ ପ୍ରାୟ ।

ଜୟ ମା କଳିଙ୍ଗ ଭାରତୀ

———

## କଳିଙ୍ଗଭାରତୀ

ସକଳ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ଜନନୀ ଭାରତୀଙ୍କୁ କଳିଙ୍ଗ ଭାରତୀ କହିବାର ଯଥାର୍ଥତା ଏ ପୁସ୍ତିକାର ପ୍ରଚ୍ଛଦପଟ ଉପରେ ମୁଦ୍ରିତ ହୋଇଥିବା ପଂକ୍ତିମାନଙ୍କରୁ ଉପଲବ୍ଧ ହେବ । "କଳିଙ୍ଗେ ଯେଉଁ ରୂପ ବହି, ଜନନୀ ମୋହନ୍ତି ଏ ମହୀ; କଳିଙ୍ଗଭାରତୀ ତାହାଙ୍କର, କଳପି ଧ୍ୟାଏ ନିରନ୍ତରେ ।" ଏହାଠାରୁ ସ୍ପଷ୍ଟୋକ୍ତି ଆଉ କଅଣ ହୋଇପାରେ ? କଳିଙ୍ଗର ସାହିତ୍ୟ ଓ କଳାର ମର୍ମୋଦ୍‌ଘାଟନ ଓ ପ୍ରଖ୍ୟାପନ କଳିଙ୍ଗ ଭାରତୀ ଅନୁଷ୍ଠାନର ଲକ୍ଷ୍ୟ । ଅସତ୍ୟ, ଅଶିବ ଓ ଅସୁନ୍ଦର ଦ୍ୱାରା ସତ୍ୟ ଶିବ ସୁନ୍ଦରର ଅପମାନ ହେଲେ ତହିଁର ପ୍ରତୀକାର ନିମନ୍ତେ ଯେଉଁ ଶକ୍ତିର ଉଦ୍‌ଭବ ହୁଏ, ଏ ଅନୁଷ୍ଠାନ ଜଣେ ନିଷ୍କିଞ୍ଚନ ବ୍ୟକ୍ତି ଦ୍ୱାରା ପ୍ରତିଷ୍ଠିତ ହୋଇଥିଲେ ହେଁ ଏହା ସେହି ଶକ୍ତିର ବଳୀୟାନ । ଏହାର ଗତିରୋଧ ଅସମ୍ଭବ । ଆଧ୍ୟାତ୍ମିକତାର ପରମ ଉପାସକ କଳିଙ୍ଗ ଜାତିର କୃଷ୍ଟି ବହୁ ପ୍ରାଚୀନ । ଜଡ଼ବାଦର ଉପାସକ ଅର୍ବାଚୀନ ବିଜାତୀୟ କୃଷ୍ଟି ଦ୍ୱାରା ଦେଢ଼ ଶତାବ୍ଦୀ ହେଲା ଏ କୃଷ୍ଟି ଅପମାନିତ ହୋଇ ଆସିଅଛି । ଏହାର ସତ୍ତା ଲୋପ କରି ସାହିତ୍ୟ ଓ କଳାକ୍ଷେତ୍ରରେ ଜଡ଼ବାଦକୁ ଅର୍ଥାତ୍ ଅସତ୍ୟ, ଅଶିବ ଓ ଅସୁନ୍ଦରକୁ ପ୍ରତିଷ୍ଠା କରିବାର ଉଦ୍ୟମ ହୋଇ ଆସିଅଛି । ଏ ଉଦ୍ୟମକୁ ପ୍ରତିହତ କରିବାକୁ କଳିଙ୍ଗଭାରତୀ ଅନୁଷ୍ଠାନର ଆବିର୍ଭାବ । ଉତ୍କଳ ଗୁଣ ସାହିତ୍ୟ ସମାଜ କଳିଙ୍ଗଭାରତୀ ଅନୁଷ୍ଠାନ ସହିତ ଅଙ୍ଗାଙ୍ଗୀଭାବରେ ଜଡ଼ିତ । କଳିଙ୍ଗ ଭାରତୀଙ୍କୁ ସାକ୍ଷୀ କରି କଳିଙ୍ଗ ପରମ୍ପରା ସମ୍ମତ ସାହିତ୍ୟ କଳା ସୃଷ୍ଟି କରିବାକୁ ଏବଂ ସକଳ ପ୍ରକାର ବିଜାତୀୟତାକୁ କାୟମନୋବାକ୍ୟରେ ସର୍ବତୋଭାବରେ ପରିହାର କରିବାକୁ ଉତ୍କଳଗୁଣ ସାହିତ୍ୟ ସମାଜର ପ୍ରତ୍ୟେକ ସଭ୍ୟଙ୍କୁ ଶପଥ ଗ୍ରହଣ କରିବାକୁ ହୁଏ । ଏ ଶପଥ ଲଙ୍ଘନର ଦଣ୍ଡ ଅନୁଷ୍ଠାନରୁ ସ୍ଥାନଚ୍ୟୁତି । କବିସମ୍ରାଟ

ଓ କୋଣାର୍କ ଏ ଅନୁଷ୍ଠାନର ଆଦର୍ଶ ଏବଂ ଉପାସନାର ସର୍ବଶ୍ରେଷ୍ଠ ସାମଗ୍ରୀ । ଏ ଦୁହିଁଙ୍କଠାରୁ ନିଃସୃତ ପ୍ରେରଣା ଉତ୍କଳ ଯୁବ ସାହିତ୍ୟ ସମାଜକୁ ବଳ ଦେଇଅଛି, ଦେଉଅଛି ଓ ଦେଉଥିବ । ଏ ଦୁହିଁଙ୍କର ପୂଜା ସତ୍ୟ ଶିବ ଓ ସୁନ୍ଦରର ପୂଜା ହୋଇଥିବାରୁ ଏ ପୂଜାର ପରିଣତି ଅବଶ୍ୟ ମଙ୍ଗଳମୟ । ଏହା ବାଧାପ୍ରାପ୍ତ ହୋଇପାରେ, କିନ୍ତୁ କୌଣସି ବାଧା ଆଧ୍ୟାତ୍ମିକ ଶକ୍ତି ପକ୍ଷରେ ଦୁର୍ଲଙ୍ଘ୍ୟ ବା ଅଲଙ୍ଘ୍ୟ ନୁହେ । ଉତ୍କଳ ଯୁବ ସାହିତ୍ୟ ସମାଜର ସଭ୍ୟମାନେ ହୃଦୟର ସକଳ ଦୁର୍ବଳତାକୁ ଦମନ କରି କଳିଙ୍ଗ ଭାରତୀଙ୍କ ସେବାକୁ ଜୀବନର ପରମ ବ୍ରତ କରି ଗ୍ରହଣ କରିଅଛନ୍ତି । ଜଡ଼ବାଦର ସେମାନେ ମହା ଶତ୍ରୁ । ସାହିତ୍ୟ ଓ କଳାରୁ ଜଡ଼ବାଦର ମୂଳୋତ୍ପାଟନ ସେମାନଙ୍କ ଧର୍ମ । ଅସତ୍ୟକୁ ସତ୍ୟ ଦ୍ୱାରା, ଅଶିବକୁ ଶିବ ଦ୍ୱାରା ଓ ଅସୁନ୍ଦରକୁ ସୁନ୍ଦର ଦ୍ୱାରା ପରାଭୂତ କରି କୋଣାର୍କ ଓ ଭଞ୍ଜ ଆଦର୍ଶର ପୁନଃପ୍ରତିଷ୍ଠା କରିବା ଉତ୍କଳ ଯୁବ ସାହିତ୍ୟ ସମାଜର ବ୍ରତ । କର୍ତ୍ତବ୍ୟ ପାଳନ ତାର ଅସ୍ତ୍ର ଓ ନିର୍ଭୀକତା ତାର ବର୍ମ । ଭଗବାନ ତାର ସହାୟ ଏବଂ ଭଗବତୀ ଭାରତୀ ତାର ବରାଭୟପ୍ରଦାତ୍ରୀ ଇଷ୍ଟଦେବୀ ।

**ଜୟ ମା କଳିଙ୍ଗ ଭାରତୀ**



ଉତ୍କଳ ଯୁବ ସାହିତ୍ୟ ସମାଜ ପାଇଁ
ପ୍ରକାଶକ – ଯୁବବନ୍ଧୁ ପୁସ୍ତକାଳୟ, ନୟାସଡ଼କ କଟକ

ମୁଦ୍ରାକର—ଶ୍ରୀ ଅନସୂୟା ପ୍ରସାଦ ପାଠକ
ରାଷ୍ଟ୍ରଭାଷା ସମବାୟ ପ୍ରେସ—କଟକ—୧୯୫୧

ଏଣୁ ଏ କବି ଛତ୍ରରେ ଚଢ଼େ,
କଲି ମୁଁ ଅନେକ ପ୍ରକାଶ ଗୀତେ ।
ଅଶେଷ ଚଉତିଶା ଚଉପଦୀ,
ତାହା କେତେ ଯେ କହିବି ସମ୍ବାଦ ।
ଗାହା ଦୋହା ଷୋଡ଼ଶପଦ ଛପେଇ,
ଇତ୍ୟାଦି କବିତ୍ୱ ଗଣନା ନାହିଁ ।
ରସ କୃଷ୍ଣ ବିଷୟ ଯେତେ ଗ୍ରନ୍ଥ,
ଚିତେ ଇଚ୍ଛାଁ କରି ଲେଖେଁ ଏଥି ।
ପ୍ରବନ୍ଧ ପୂରି କଳ୍ପନା ମାଧୁରୀ,
ସୁରୁଚି ଚିତ୍ରଲେଖା ହେମ ମଞ୍ଜରୀ ।
ରସଲେଖା କାମକଳା ରଚିତ,
ମନୋରମା ପ୍ରେମଲତା ସୁଗୀତ ।
ଭାବବତୀ ମୁକ୍ତାବତୀ ପ୍ରମାଣି,
ବରଜଲୀଳା ଯେ ଗ୍ରନ୍ଥ ଭୂଷଣି ।
ଛଉରତୁ କଳାକଉତୁକର
‘କ’ନପୁମ ସାଦ୍ୟ ସୁଭଦ୍ରାସାର ।
ବୈଦେହୀଶ ବିଳାସ ସେହି ବ-ଆଦ୍ୟ,
ପ୍ରସିଦ୍ଧ ଅବନା ଦ୍ୱାଦଶ ଗ୍ରନ୍ଥ ।
ସମଲୀଳାମୃତ ଶେଷ ରଚିତ,
ପ୍ରେମସୁଧାନିଧି ପଦେକେ ସ୍ଥିତ ।
ରସିକହାରାବଳୀ ନାମେ ଗୀତ,
କୃଷ୍ଣବିହାରାଦି ଶ୍ୟାମଚରିତ ।
ଅଲଙ୍କାର ଗୀତ ରସପଞ୍ଚକ,
ଲାବଣ୍ୟବତୀ ରସିକଚୋଡକା ।
ପୁରୁଷୋତ୍ତମ ମହାତ୍ମ୍ୟ ରଚନ,
ନାନା କୋଷ ଛନ୍ଦେ ଗୀତାଭିଧାନ ।
ଗ୍ରନ୍ଥ କୋଟି ତାର ଚନ୍ଦ୍ରମ ପଦ,
ଯା ନାମ କୋଟି ବ୍ରହ୍ମାଣ୍ଡ ସୁଯଶ ।
ଚୈତନ୍ୟମୋହିନୀ ଆଦି ଯେ ଗୀତ,
ନିର୍ମିତ ଗ୍ରନ୍ଥ ପୋଥି ପାଞ୍ଚ ସାତ ।
[ଉପେନ୍ଦ୍ର—ଚଉକାବ୍ୟ ବନ୍ଧୋଦୟ]

ସାଗରସ୍ୟୋତ୍ତରତୀରେ ମହାନଦ୍ୟାସ୍ତୁ ଦକ୍ଷିଣେ
ସ ପ୍ରଦେଶ ପୃଥିବ୍ୟାଂ ହି ସର୍ବତୀର୍ଥଫଳପ୍ରଦଃ ।

[ସ୍କନ୍ଦ]

ଭାରତେଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ ।

[ତନ୍ତ୍ରଯାମଳ]

ବିରଜେ ବିରଜାନାମ ବ୍ରାହ୍ମଣୀ ସଂପ୍ରତିଷ୍ଠିତା
ଯସ୍ୟାଃ ସନ୍ଦର୍ଶନେ ମର୍ତ୍ତ୍ୟଃ ପୁନାତ୍ୟା ସପ୍ତମଂ କୁଳଂ ।

[ବ୍ରହ୍ମପୁରାଣ]

ସନ୍ତି ତୀର୍ଥାନି ପୁଣ୍ୟାନି ପୁଣ୍ୟସ୍ୟାୟତନାନି ଚ
ଉତ୍କଳେ ତୁ ମୁନିଶ୍ରେଷ୍ଠା ବେଦିତବ୍ୟାନି ତାନି ବୈ ।
ସମୁଦ୍ରସ୍ୟୋତ୍ତରେ ତୀରେ ତସ୍ମିନ୍ ଦେଶ ଦ୍ୱିଜୋତ୍ତମାଃ ।
ଆସ୍ତେ ପୁଣ୍ୟ ପରଂ କ୍ଷେତ୍ରଂ ମୁକ୍ତିଦଂ ପାପନାଶନଂ ।
ଧନ୍ୟାସ୍ତେ ବିବୁଧ ପ୍ରଖ୍ୟା ଯେ ବସନ୍ତ୍ୟୁତ୍କଳେ ଜନାଃ ।
ତୀର୍ଥରାଜ ଜଳେ ସ୍ନାତ୍ୱା ପଶ୍ୟନ୍ତି ପୁରୁଷୋତ୍ତମଂ ।
ସ୍ୱର୍ଗେ ବସନ୍ତି ତେ ମର୍ତ୍ତ୍ୟା ନ ବସନ୍ତି ଯମାଳୟେ ।

[ବ୍ରହ୍ମପୁରାଣ]

ତତ୍ରାସ୍ତେ ଭାରତେ ବର୍ଷେ ଦକ୍ଷିଣୋଦଧିସଂସ୍ଥିତଃ
ଓଡ୍ର ଦେଶ ଇତି ଖ୍ୟାତଃ ସ୍ୱର୍ଗମୋକ୍ଷପ୍ରଦାୟକଃ ।

[ରଘୁନନ୍ଦନ]

ସିଂହାଦ୍ରୌ ଦେବଦେବେଶଂ ବୈକୁଣ୍ଠଂ ମାଗଧେ ବନେ
ସର୍ବପାପହରୋଃ ବନ୍ଦ୍ୟେ ଓଡ୍ରେ ଶ୍ରୀପୁରୁଷୋତ୍ତମଂ ।

[କୂର୍ମ୍ମପୁରାଣ]

